ଭକ୍ତକବି ବଳରାମ ଦାସଙ୍କ କୃତ

# ସପ୍ତାଙ୍ଗଯୋଗସାର

# ଟୀକା



ଶ୍ରୀ ରାଧାରମଣ ପୁସ୍ତକାଳୟ ଦ୍ୱାରା

ପ୍ରଥମବାର ପ୍ରକାଶିତ ।


ପ୍ରାପ୍ତିସ୍ଥାନ :—

ଶ୍ରୀରାଧାରମଣ-ପୁସ୍ତକାଳୟ

ବାଲୁବଜାର, କଟକ

ପୋ: ଚାନ୍ଦନୀଚୌକ

୧୯ ୨

ମୂଲ୍ୟ ଟ ୦ /୬ ଛଅପଇସା ମାତ୍ର

# ସପ୍ତାଙ୍ଗଯୋଗସାର ଟୀକା



ନମସ୍ତେ ଗୁରୁଦେବ ହେ ଯୋଗାଧିପୁରୁଷ । ଅନ୍ତର୍ଯାମି ନାଥ ତବ ମହିମା ଅଶେଷ । ୧ । ନମସ୍ତେ ଗୁରୁଦେବ ପରମଯୋଗେଶ୍ୱର । ସଚରାଚରସ୍ୱାମୀ ସକଳ ଗୋଚର । ୨ । ନମସ୍ତେ ଗୁରୁଦେବ ହେ ସର୍ବଶାସ୍ତ୍ର ବେତ୍ତା । ନମସ୍ତେ ଗୁରୁଦେବ ହେ ସର୍ବସୁଖଦାତା ।୩। ନମସ୍ତେ ଗୁରୁଦେବ ହେ ସର୍ବଧର୍ମସାର । ନମସ୍ତେ ଗୁରୁଦେବ ହେ ବ୍ରହ୍ମା ବିଷ୍ଣୁ ହର । ୪ । ନମସ୍ତେ ଗୁରୁଦେବ ହେ ଜ୍ଞାନକଳ୍ପତରୁ । ସର୍ବଧର୍ମଧାରଣା ଅଚଳ ମହାମେରୁ । ୫ । ନମସ୍ତେ ଗୁରୁଦେବ କରୁଣାମୟ ସିନ୍ଧୁ । ଅଘତିମିର ନାଶକ ତୁମ୍ଭେ ଜ୍ଞାନଇନ୍ଦୁ । ୬ । ନମସ୍ତେ ଗୁରୁଦେବ ପରମ ବ୍ରହ୍ମବଶି । ଗଳାରୁ ହରନ୍ତୁ ମୋର କାଳଦଣ୍ଡପାଶ । ୭ । କରନ୍ତୁ ସ୍ତୁତି ମଲ୍ଲିକା ଗୋରକ୍ଷଙ୍କୁ ଗୃହି । ଦୁର୍ଲ୍ଲଭ କଥା ଏ ସ୍ୱାମୀ ପଚ୍ଛୁରିବ ମୁହିଁ । ୮ । ପ୍ରସନ୍ନ ହୋଇଣ ସ୍ୱାମୀ କହିବ ସେ କଥା । ତେବେ ସେ ଛାଡ଼ିବ ମୋର ଜନ୍ମ ମୃତ୍ୟୁ ବ୍ୟଥା । ୯ । ଚରଣେ ପ୍ରଣାମ ସ୍ୱାମୀ କହିବା ସେ ବିଧି । ମହାଯୋଗେଶ୍ୱର ତୁମ୍ଭେ ଜାଣ ଏହି ବିଧି । ୧୦ । ଉପଦେଶ ସାର ଅଙ୍ଗ କର ଗୁରୁଦେବ । ଏ ଜୀବକୁ ଅସ୍ମା ଛାଡ଼ି ଯେମନ୍ତେ ନ ଯିବ । ୧୧ । ସେ କାଟ ବୁଝାଇ ମୋତେ କହିବା ହେ ସ୍ୱାମି । ଅସ୍ମାରାମ ଜ୍ଞାନ ତୁମ୍ଭେ ସର୍ବ ଯୋଗଗାମୀ । ୧୨ । ହେ ସ୍ୱାମୀ ପରମଦୀକ୍ଷା ମୋତେ ତୁମ୍ଭେ କହ । ଯେମନ୍ତେ ହୋଇବ ସ୍ୱାମୀ ଅଜ୍ଞାନ ସନ୍ଦେହ ।୧୩ ଯୋଗମାନଙ୍କର ସ୍ୱଜ୍ଞା ଜ୍ଞାନଙ୍କର ସାର । ସେହି ଉପଦେଶ ଦେଇ ମୋତେଣୁ ଉଦ୍ଧାର । ୧୪ । ଜୀବ ପରମ ଶାଙ୍କୋଳ ଲେଖିଅଛ ଯାହା । ସଂଶୟ ଫିଟାଇ ମୋତେ କହିବା ତାହା । ୧୫ । ଜୀବ ପରମ ସମ୍ଭୁତ

କେମନ୍ତେ ହୋଇଲେ । ପ୍ରଥମେ କରୂପେ ସ୍ୱାମି କାହିଁ ସେ ରହିଲେ ॥ କେବଣ ମାର୍ଗରେ ସ୍ୱାମି ସେ ଘଟେ ବିଶ୍ରାମ । କି ଜ୍ୟୋତି ପ୍ରକାଶ ସ୍ୱାମି କେମନ୍ତେ ଉପାମ ।୧୭। ଶ୍ୱାସ ଦିବସ ବେଳ ସେ କେଉଁଠାରେ ଥାନ୍ତି କେଉଁଠାରୁ ଅବି ସ୍ୱାମି ପ୍ରକାଶ ହୁଅନ୍ତି । ୧୮ । ସନ୍ଧ୍ୟା ପାହାନ୍ତି ଯେ ସ୍ୱାମି କାହାକୁ ବୋଲିବା । ଏହିଗୃର କଥା ସ୍ୱାମି ମୋତେ ଅଜ୍ଞହେବା ॥ ଅନ୍ତର କଥା ଏ ସ୍ୱାମି ପଚ୍ଛିବି ଯାହା । କେ ସ୍ୱାମି ପ୍ରସନ୍ନେ ମୋତେ ବୁଝାଇବ ତାହା ।୨୦। ପିଣ୍ଡମଧ୍ୟେ ଅତ୍ମା ସ୍ୱାମି କେଉଁବନ୍ଧେ ରହି । ଯମର ଶାସ ଯେ ମୋତେ ନ ଲାଗିବ ଯହିଁ । ୨୧ । ଯମକୁ ଦୂରହୋଇ ମୋତେ ସେ ଜ୍ଞାନ କହିବା । ଅଚେତନ ପିଣ୍ଡକୁ ଚେତନା କରାଇବା । ୨୨ । ଅଲେଖ ନିରଞ୍ଜନକୁ ଚିହ୍ନିବା କେମନ୍ତେ । ଏ ଦେହକୁ ଘେନି ସ୍ୱାମି ରହିବ ଯେମନ୍ତେ । ୨୩ । କେବଣ ମାର୍ଗେ ମୁଁ ଯେ କେବଣ ଯୋଗ କରି । ଜନ୍ମ କେବଣ ପ୍ରକାରେ ମୃତ୍ୟୁ ହେବ ପାରି । ୨୪ । କେବଣ ପ୍ରକାରେ ସ୍ୱାମି ଯମ ନୋହେ ଭେଟ । କେବଣ ପ୍ରକାରେ ରୋଗ ନ ପଶଇ ଘଟ । ୨୫ । କେବଣ ପ୍ରକାରେ ସ୍ୱାମି କାଳକର୍ମ ଜିଣି । କେବଣ ପ୍ରକାରେ ସ୍ୱାମି ରହିବ ଉଜାଣି । ୨୬ । କେବଣ ବନ୍ଧେ ତ୍ରିକୂଟ କୁଟୁଙ୍କ ପିଟିବ । କେବଣ ବନ୍ଧରେ ହଂସ ସରୋବରେ ଥିବ ॥ କେବଣ ବନ୍ଧରେ ସ୍ୱାମି ଖେଳୁଥିବ ଭୃଙ୍ଗ । କେବଣବନ୍ଧେ ସ୍ୱାମି ଅଟଳ ହେବ ଅଙ୍ଗ । ୨୮ । କେବଣ ବନ୍ଧରେ ଭୃଙ୍ଗ କମଳକୁ ଯିବ । କେବଣ ବନ୍ଧେ କେଶର ଅମୃତ ଚୁମ୍ବିବ । ୨୯ । ବିଗୃର କରି ସ୍ୱାମି କହିବ ଏହି ବିଧି । ଏ ଦେହ ଘେନି ସ୍ୱାମୀ ହୋଇବ ଯେଣେ ସିଦ୍ଧି । ୩୦ । ସାତ ବାର ଯୋଗ ସ୍ୱାମି ଅଛଇ ଯେମନ୍ତେ । ଭେଦ ସୂକ୍ଷ୍ମେ ଭେଦ ସ୍ୱାମି କହିବେବ ମୋତେ । ୩୧ । କେଉଁ ଘରର ଚନ୍ଦ୍ର ସ୍ୱାମି ସୂର୍ଯ୍ୟ କେଉଁ ଘରେ । ଚନ୍ଦ୍ର ସୂର୍ଯ୍ୟ ବନ୍ଧୀ ଏଥି କେବଣ ପ୍ରକାରେ । ୩୨ । ସାତବାରେ ଚନ୍ଦ୍ର ସୂର୍ଯ୍ୟ କେମନ୍ତେ ମିଶିଲେ । କେଉଁ ବାରକୁ ଘେନି କେ ଉଦୟ ହୋଇଲେ । ୩୩ । ଜୀବ ପରମ ବିଗୃର ଅତ୍ମା ବିଧି ଯୋଗ । ସାତବାର

ଅବ ସ୍ୱାମି ଚନ୍ଦ୍ର ସୂର୍ଯ୍ୟ ଭେଦ । ୩୪ । ଏହୁ ଘଟେ ସ୍ୱାମି ମୋତେ
ପ୍ରତ୍ୟକ୍ଷେ କହିବ । ନମସ୍ତେ ନମସ୍ତେ ସ୍ୱାମୀ ନମୋ ଗୁରୁଦେବ । ୩୫ ।
ଏତେ ବୋଲି ମଲ୍ଲିକା ଯେ ଗୁରୁପାଦ ଧରି । ଘଟ ଯୋଗ ସ୍ୱାମି ମୋତେ
କହିବା ବିସ୍ତାରି । ୩୬ । ମଲ୍ଲିକା ମୁଖୁଁ ଗୋରଖ ଏମନ୍ତ ଶୁଣିଲେ
ପରମଯୋଗ ପ୍ରଭାରେ ଶୁଣ ହୁ ବୋଇଲେ ।୩୭। ଯାହାରୁହୁ ପଶ୍ଚରିଲୁ
ପରମ ଗୁପତ । ସାତଜଣ ଜାଣି ଏହୁ ଯୋଗେ ହେଲେ ମୁକ୍ତ । ୩୮ ।
ସେ କେବଣ ଲୋକ ଶୁଣ କହିବା ତୋ ଆଗେ । ଦେହ ଘେନି
ପ୍ରତ୍ୟକ୍ଷେ ସେ ରହିଲେକ ଯୋଗେ । ୩୯ । ସଦଗୁରୁ କୃପା ବଳେ
ଜାଣଇଟି ପୁତା । ସେ ବ୍ରହ୍ମଯୋଗେ ଯଶି ବୋଲାଇ ବ୍ରହ୍ମବେତ୍ତା । ୪୦ ।
ତୋ ଆଗେ ମଲ୍ଲିକା ଶୁଣ କହିବା ବିସ୍ତାରି । ଜନ୍ମ ମୃତ୍ୟୁ ଘଟ ସ୍ୱହ
ପକାଅ ପାସୋରି ।୪୧। ସାତ ବାର ଜନ ଯୋଗ ପଶ୍ଚିଲ୍ଲ ମୋତେ ।
ସଂଶୟ ଫିଟାଇ ପୁତା ବୁଝାଇବା ତୋତେ ।୪୨। ସାତ ବାର ଅଦ୍ଧ-
ଚନ୍ଦ୍ର ବୃନ୍ଦ ଜେର ଘଟେ । ଧାରଣା କହିବା ଶୁଣ ସାଧ ଯେଉଁ ବାଟେ ।
ଜଳଭିତରେ ପୁତା ରେ ପବନର ଠଣା । ଶଷଯୁ ଯନ୍ତ୍ରିତ ପ୍ରାଣୀ
ହୋଇଥାନ୍ତି ବଣା । ୪୪ । ଜାୟା ପ୍ରକୃତିକ ଅଟେ ପବନ ପୁରୁଷ ।
ପୁରୁଷ ସଂଯୋଗେ ପ୍ରକୃତି ଏ ହୋନ୍ତି ନାଶ । ୪୫ । ପବନ ଯନ୍ତ୍ରିତ
ପୁତା ଯନ୍ତ୍ର କଳେବର । ଏ ପିଣ୍ଡ ଅଟଇ ପୁତା ପବନ ଆକାର ।୪୬।
ଯନ୍ତ୍ରେ ସାର ହୋଇ ପୁତା ପବନ ରହିଛି । ଦଶପ୍ରକାରେ ପୁତାରେ
ବିହାର କରୁଛି ।୪୭। ଷାଠିଏ ସହସ୍ର ନାଡ଼ୀ ପ୍ରକୃତି ବିକାର । ତହିଁରୁ
ତିନିନାଡ଼ୀ ମଧ୍ୟେ ଦଶନାଡ଼ୀ ସାର । ୪୮ । ସେ ଦଶନାଡ଼ୀରେ ପୁତା
ଦଶ ସମୀରଣ । ତହିଁର ସାର ଏବେ କହିବା ତାହା ଶୁଣ । ୪୯ ।
ସେହୁ ପୁଣି ତିନିବିଧ ପ୍ରକାରରେ ହୋଇଲା । ନତ୍ୟେ ଅଶ୍ରେ କର ଶୂନ୍ୟ
ଭୁବନୁଁ ଖସିଲା ।୫୦। ବୀର୍ଯ୍ୟ ଶୁକ୍ର ବଳଙ୍କ ହୋଇଲେ ଶରୀରରେ । ସବ
ଦେହେ ଅଛନ୍ତି ସେ କର୍ତ୍ତବ୍ୟଭେଦରେ । ୫୧ । ହଂସ ପୁହଂସ ପୁତା
ପରମହଂସ ତିନି । ନିରଞ୍ଜନ ସ୍ୱରୂପ ଏ ପଞ୍ଚତତ୍ତ୍ୱ ଘେନି । ୫୨ । ତାହା

ତୋତେ ମକ୍ଷିକାରେ କହିବା ବୁଝାଇ । ମନ ପବନକୁ ତହିଁ ଥିବୁଟି ଚକ୍ଷୋଭା।୫୩।ପରମହଂସ ମହିମା ମନ ଦେଇ ଶୁଣ । ଏତତ୍ତ୍ୱଭେଦ ପୁତ୍ରା କହିବା ତୋତେ ପୁଣ । ୫୪ । ପ୍ରଥମେ ପରମହଂସ ଶୂନ୍ୟ ଜନ୍ମ ହେଲା । ସେ ପୁଣ ହଂସ ସୁହଂସ ବେନି ଜାତ କଲା । ୫୫। ଡ଼ାହାଣ ଜନ୍ମିଲା ପୁତା ବୀର୍ଯ୍ୟରୂପେ ହଂସ । ବାମଭାଗ ରଜରୁ ଯେ ଜନ୍ମିଲା ସୁହଂସ । ୫୬। ସତ୍ୱ ରଜ ତମ ଏ ତିନିହେଁ ଜାତ ହୋଇ । ସର୍ବମନ୍ତ୍ର ଯନ୍ତ୍ର ମୂଳା ପାଞ୍ଚତନ୍ତ୍ର ସେହି । ୫୭ । ହଂସ ହେଲା ବୀର୍ଯ୍ୟ ଯେ ସୁହଂସ ରଜ ହେଲା । ମଧରେ ପରମ ହଂସ ସ୍ଥାଳକ ହୋଇଲା । ୫୮ । ସ୍ୱପନ ଜାଗ୍ରତ ପୁତା ନିଦ୍ରା ଏହୁ କରି । ଏ ତିନି ଅବସ୍ଥା ପୁତାଦେହରୁ ଅବୋରି ।୫୯। ଜାଗ୍ରତ ଅବସ୍ଥା ପୁତା ଧରିଥାଇ ହଂସ । ନିଦ୍ରାର ଅବସ୍ଥା ପୁତା ଧରଇ ସୁହଂସ ।୬୦। ପରମହଂସ ଧରଇ ସ୍ୱପ୍ନର ଅବସ୍ଥା । ଦେହ ଆତ୍ମା ବୁଝାଇଣ କହିବା ବ୍ୟବସ୍ଥା ।୬୧। ଗତାଗତ ପ୍ରକୃତି ହୁଅନ୍ତି ଦେହ ଯେନି । ଏଣୁ ଜାଗ୍ରତ ଅଭସି ଅବସ୍ଥା ଏ ଯେନି ।୬୨। ଏତିନି ପ୍ରଳୟେ ପୁତା ଲଭିବୁ ବିଶ୍ରାମ । ତାହାକୁହି ବୋଲି ପୁତା ନିରଞ୍ଜନ ଧାମ ।୬୩। କେବଳ ଲକ୍ଷ ପୁତାରେ ଜାଣନ୍ତି ଶଙ୍କର । ସେ ସ୍ଥାନକୁ ଜାଣି ପୁତା ହୋଇଲେ ଅମର ।୬୪। ମୁଁ ପୁଣି ପାଇଲି ପୁତା ସଦ୍‌ଗୁରୁ ପଚ୍ଛରି । ମୁନିଏ କହିଲେ ମୋତେ ଏ ଯୋଗ ବିଚାରି ।୬୫। ପୂର୍ବେ ଏ ଯୋଗ ପୁତା ରେ ଅଦ ଗର୍ବେ ଥିଲା । ଅନାଦି ଜନନୀ ପୁତା ଅଦକୁ ପୃଛିଲା ।୬୬। ଯୋଗ ଗର୍ଭ ବୋଲି ତାର ନିଜ ନାମ ଖ୍ୟାତ । ତାହାକୁହି ବୋଲି ପୁତା ବ୍ରହ୍ମଜ୍ଞାନ ତତ୍ତ୍ୱ ।୬୭। ସପତାଙ୍ଗ ମହାରୁଦ୍ର ଅଷ୍ଟାଙ୍ଗ ଧାରଣା । ତାହାକୁ ସେ ଯୋଗ ପୂର୍ବେ ହୋଇଥିଲା ବଣା ।୬୮। ଅନାଦିଠାରୁ ରୁଦ୍ର ପାଇଲେ ଉପଦେଶ । ତେବେହିଁ କାଟିଲେ ପୁତା କାଳଚକ୍ର ପାଶ । ୬୯ । ଲୋମାଷ ନାମେ ପୁତା ଅଛଇ ଏକ ଋଷି । ମହାଦେବର ଶିଷ୍ୟ ଏ ଯୋଗମାର୍ଗେ ବସି ।୭୦। ସେ ପୁଣି ପଚ୍ଛରିଲେ ଶଙ୍କରଙ୍କ ଅଗ୍ରତେ ।

ଏ ଦେହ ଘେନ ସ୍ୱାମି ମୁଁ ରହିବ ଯେମନ୍ତେ । ୭୧ । ସେ ଯୋଗ କହ ସ୍ୱାମି ସଂଶୟ ମୋର ଛେଦ । ତେ ସ୍ୱାମି ଯେମନ୍ତେ ମୋର ନୋହୁ ମୃତ୍ୟୁ ଭେଦ ।୭୨। ଯୋଗାରୂଢ ରୁଦ୍ର କହ ଦେଲେ ଲୋମାଙ୍କୁ । ସେ ଯୋଗ ଜାଣିଲେ ବ୍ରହ୍ମାଣ୍ଡର ଶଯରକୁ ।୭୩। କୋଟି ବ୍ରହ୍ମାଣ୍ଡ ପ୍ରଳୟେ କ୍ଷେମ ନ ଟଳଇ । ଲୋମାଷ ନାମ ପୁଚ୍ଛାରେ ତେଣୁ ସେ ବୋଲଇ । ୪୭ । ପ୍ରଚଣ୍ଡ ନାମେ ପୂଚା ଥିଲକ କାକ ଗୋଟି । ତାହାର ପୂର୍ବ ପ୍ରତାପର ଭୁଶୁଣ୍ଡି ନାମଟି ।୫୭। ସେ ପ୍ରଶି ଶିଷ୍ୟ ସ୍ୱତରେ ଲୋମାଷଙ୍କୁ ପୁଛି । ସେ ଯୋଗ ଜାଣି ପ୍ରତାପେ ଅମର ହୋଇଛି ।୭୬। କୋଟି ଯୁଗ ଗଲ ବହୁ ରହିଅଛି କାୟ । ଜାଣନ୍ତ ଯୋଗ ଅଛି ନ ଲାଗେ ମୃତ୍ୟୁ ଭୟ ।୭୭। ବଶିଷ୍ଠ ନାମରେ ଋଷି ରଘୁବଂଶ ଗୁରୁ । ସେ ପୁଣ ପାଇଲ ତହୁ ଭୁଶୁଣ୍ଡି ମୁଖରୁ । ୭୮ । ସେହୁ ଯୋଗ ପାଇଁ ଯୋଗ ବଶିଷ୍ଠ ବୋଲଇ । ଶ୍ରୀରାମଚନ୍ଦ୍ରଙ୍କୁ ପୁଣ କହିଲେ ବୁଝାଇ ।୭୯। ଶିଷ୍ୟଭାବେ ରାମ ତାଙ୍କୁ ପଚାରିଲେ ଯହୁଁ । ପ୍ରସନ୍ନ ହୋଇ ବ୍ରହ୍ମର୍ଷି କହିଲେକ ତହୁଁ ।୮୦। ହନୁମାନ ବୀର ମୃତା ଶ୍ରୀରାମ ବଳାସ । ପ୍ରାଣୀ ହିତକାରୀ ସେ ଶ୍ରୀରାମଙ୍କର ଦାସ ।୮୧। ସେ ପୁଣ ପଚାରିଲେ ଶ୍ରୀରାମ ମୁଖ ଯହୁଁ । ତାହାକୁ ଏ ଯୋଗ ଯେ କହିଲେ ସୀତାସାଇଁ ।୮୨। ଶୁଣ ହନୁମାନ ଏ ପରମ ଯୋଗ ସାର । ଯେବଣ ଯୋଗ ଜାଣି ଅମର ହେଲେ ହର । ୮୩ । ଏହି ଦେହ ଘେନିଣ ତୁ ଯୁଗେ ଯୁଗେ ଥିବୁ । ଜୀବ ପରମ ଚନ୍ଦ୍ର ସୂର୍ଯ୍ୟଙ୍କୁ ତୁ ଜାଣିବୁ ।୮୪। ଚନ୍ଦ୍ର ସୂର୍ଯ୍ୟ ଯୋଗ ମୋତେ କହିଲେ ବଶିଷ୍ଠ । ଯୋଗମାନଙ୍କରେ ଯେ ଅଟଇ ଯୋଗଶ୍ରେଷ୍ଠ ।୮୫। ପ୍ରଥମ ଯୋଗ ଏ ଚନ୍ଦ୍ର ସୂର୍ଯ୍ୟ ନାଡ଼ୀ କହୁ । ସାତବାର ଗଣ୍ଡି ନୃହ ପଡ଼ିଅଛି ଯହୁଁ ।୮୬। ଇଡ଼ା ପିଙ୍ଗଳା ପୁତା ସୁଷୁମ୍ନା ତିନ । ଉଦୟ ହୋଇ ଅଛନ୍ତି ସାତବାର ଘେନ ।୮୭। ପିଙ୍ଗଳା ଉଦୟେ ରବି ମଣ୍ଡଳୁ ଚନ୍ଦ୍ରୁ । ଗୁରୁବାର ଜଗି ଦବାକରଙ୍କୁ ହେଟିବୁ । ୮୮ । ଇଡ଼ାଉଦୟ

ସୋମମଣ୍ଡଳ ସୁମେର । ତିନିବାର ଲଗି ପୃଛା ଭେଟ ନିଶାକର । ୮୯ ।
ଏ ବେନି ସଙ୍ଗମ ପୃଛା ସୁଷୁମ୍ନା ଭେଟ । ଶୂନ୍ୟ ମେରୁ ବୋଲି ତାକୁ
ଅଚଳ କିହୁଟ ।୯୦। ତଥି ଉପରେ ପୃଛାରେ ବ୍ରହ୍ମରନ୍ଧ୍ରଦ୍ୱାର ।
ଛଳ ଶ୍ୱେପା ପ୍ରାପ୍ତେ ପୃଛା କପାଟ ସେଠାର । ୯୧ । ତାଳୁ ନାସିକା
ମଧ୍ୟରେ ହେତୁ କରି ଜାଣ । ନିରନ୍ତରେ ସେହିଠାରୁ ଝରୁଅଛି ପ୍ରାଣ ॥
ସେଠାରେ କାଳ ପୃଛାରେ ସପ୍ତମ ଅର୍ଗଳ । ଯମରାଜା ପୁରର କାଳ-
ଚକ୍ରର ମଣ୍ଡଳୀ ।୯୩। ସେ ଦ୍ୱାରେ କାଳ ପୃଛାରେ ବନ୍ଦକର ରକ୍ଷ ।
ବ୍ରହ୍ମ କପାଟ ପିଟାଇ ଅଲେଖକୁ ଦେଖ । ୯୪ । ତେବେଟି ଯମର
ଫାସ ନ ଲାଗିବ ତୋତେ । ଆତ୍ମାକୁ ମିଶାଅ ନେଇ ଅଲେଖ ସଙ୍ଗତେ
କାଳକୁ ଜିଣିଣ ପୃଛ ଧରି ପାରୁ ଯେବେ । ଅଞ୍ଚପୂ ପିଣ୍ଡରେ ବଜ୍ର
ହୋଇଯାଉ ତେବେ ।୯୫। ପବନ ଶାଙ୍କୋଳ ନେଇ ପଞ୍ଚାଇବୁ
ଛନ୍ଦ । ଓଡ୍ଡିଆଣ ମୂହାଣେ ଯମେ ପଞ୍ଚାଇବୁ ବାନ୍ଧ । ୯୬ । ବ୍ରହ୍ମ
ସମାଧିରେ ଧରି ବ୍ରହ୍ମଅଗ୍ନି ଜାଳ । ବ୍ରହ୍ମଅଗ୍ନି ତେଜରେ ଦହନ
ହେଉ କାଳ ।୯୭। କାଳଅଗ୍ନି ଲିଭୁ ପୃଛା ବ୍ରହ୍ମଅଗ୍ନି ତେଜେ ।
ତେବେଟି ଦଣ୍ଡରେ ଆତ୍ମା କରିଥିବ ବିଜେ । ୯୮ । ଆତ୍ମା ସିଦ୍ଧି
ପାଇଲେ ଘଟର ସିଦ୍ଧି ପାଇ । ଉଲଟି ରଖି ପବନ ଚକ୍ରକୁ ମଞ୍ଚାଇ ॥
ମୃତ୍ୟୁ ଦେବତାକୁ ପୃଛା ତେବେ ପାରୁ ଜିଣି । ଖପରେ ଲାଗିବା
ତେବେ ସହଜେ ଉଜାଣି ।୧୦୧। ଏ ପିଣ୍ଡକୁ ନିରନ୍ତରେ ଯୋଡ଼ିଅଛି
କାଳ । ଦିବା ନିଶି ଜାଗି ପୃଛା ଯୋଗ ଧରି ଖେଳ ।୨୦୨।
ଟୀ ଇନ୍ଦ୍ର ନାଥ ମୋତେ ଉପଦେଶ ଦେଲେ । ସାତବାର ସପତାଙ୍ଗ
ଅଷ୍ଟ ଯୋଗ ଦେଲେ ।୧୦୩। ଚନ୍ଦ୍ର ଅଙ୍ଗେ ଥିବାର ଏ ଷୋଳ-
କଳା ତିଥି । ସୂର୍ଯ୍ୟ ଅଙ୍ଗେ ବାରକଳା ଶୁଣବାର ଯେନ ।୧୦୪। ସ୍ୱକ
ଦିବସ ମିଶି ଯେ ସାତବାର ହୋଇ । ଏ ଯୋଗ ବଶିଷ୍ଠ ଋଷି ଛନ୍ତି
ମୋତେ କହି ।୧୦୫। ଶନି ରବି ଗୁରୁ ଯେ ମଙ୍ଗଳ ଅଦ୍ଭୁତ ।
ସୂର୍ଯ୍ୟଅଙ୍ଗେ ଯୋଗାଙ୍ଗ ଦିବସ ଜାତ କରି ।୧୦୬। ବାରୁଣୀଯୋଗ

ଏହୁଟି ଦକ୍ଷିଣ ସମୀରେ । ଏ ଶୁକ୍ରବାରରେ ପୁତା ଜାଣ ସୂର୍ଯ୍ୟ ଘରେ ॥ ସୋମ ଶୁକ୍ର ବୁଧକୁ ତୁ ବାମଙ୍ଗରେ ରଖ । ଚନ୍ଦ୍ର ମିଶି ନାଡ଼ୀ ଏ ଉଦୟ ହେବ ଦେଖ ।୧୦୮। ଏହୁ ତିନିବାର ବାମଙ୍ଗରେ ସମୀର । ଜାଗ୍ରତେ ଜାଗିଲେ ଦେହ ପାଇବୁ ତୁ ସ୍ଥିର । ୧୦୯ । ତେବେଟି କାଳଚକ୍ରରେ ନୋହିବୁ ତୁ ଭେଦ । ପରମ ଯୋଗ ସାଧି ତୁ ଦେଖ କଣବଦ । ୧୦୦ । ଏହୁ ଯୋଗ ଧରି ମୃତ୍ୟୁଁ ଲଙ୍ଘା ଜଳ ଥୟ । କାଳ ମୃତ୍ୟୁ ନ ପଶଇ ଅକ୍ରାମର କାୟ ॥ ଶ୍ରୀରାମଙ୍କ ଅଜ୍ଞା ପାଇ ହନୁମାନ ସ୍ଥିର । ଏ ଯୋଗ ଧରି ପୁତାରେ ହୋଇଲେ ଅମର ॥ ଏ ସାତ ଜାଣ ପୁତାରେ ଉପଦେଶ ପାଇ । ଏ ଜ୍ଞାନ ତୋତେ ପୁତାରେ କହିବା ବୁଝାଇ ॥ ଅତି ଗୁପତ କଥା ଏ ଦୁର୍ଲଭ ବାରତା । ସେ କଥା ଜାଣିଲେ ପୁତା ହେବୁ ଅମୃତା । ଉପଦେଶ ସାର ଯେ କହିଲ ସିଦ୍ଧିଯୋଗ । କେବେହେଁ ଘଟେ ତୋହର ନ ପଶିବ ରୋଗ । ପୂର୍ବେଟି ଶଚୀନ୍ଦ୍ର ନାଥ କହିଛନ୍ତି ମୋତେ । ସେ କଥା ଶୁଣ ପୁତାରେ କହୁଅଛି ତୋତେ ॥ ଅଦ୍ଧ ଅନାଦି ଯୋଗୀ ଏ ସର୍ବ ମୋର ଗୁରୁ । ସର୍ବ ଯୋଗ ଧାରଣା ଅଟଳ ମହାମେରୁ ॥ ସେ ମୋତେ କହିଛନ୍ତି ପରମ ଗୋପ୍ୟ କରି । ଯେଣୁ ପଚାରିଲୁ ପୁତା ବେଦବାଦ ଧରି ॥ ଶୁଣ ପୁତା ପଚାରିଲୁ ଯେଉଁ ବେଦ ଯୋଗ । ସଂଶୟ ଫିଟାଇଣ କହିବା ତୋର ଅଗ ॥ ପ୍ରସନ୍ନ ହୋଇଣ ଗୁରୁ କହିଲେ ସେ କଥା । ତେବେ ସେ ଛିଡ଼ିଲା ମୋର ଜନ୍ମ ମୃତ୍ୟୁ ବ୍ୟଥା ॥ ସେହିଠାରୁ ସପ୍ତ ଭୂମି ସପ୍ତଖଣ୍ଡ ଜ୍ଞାନ । ସପ୍ତଦ୍ୱାର ବାରୁଣୀ ସାରୂପ୍ୟ ମୁକ୍ତ ଧାମ । ଯୋଗମାନଙ୍କର ରାଜା ରାଜଯୋଗ କହି । ବ୍ରହ୍ମଜ୍ଞାନ ବୋଲି ପୁତା ବ୍ରହ୍ମକୁ ସାଧଇ ॥ ଯୋଗ ଅଙ୍ଗେ ଯୋଗ ପୁତା ଭୋଗ ଅଙ୍ଗେ ଜାଣ । ତେବେ ସେ ରହିବ ପୁତା ସହଜେ ଉଜାଣି ॥ ଯୁଗେ ଯୁଗେ ପୁତାରେ ଭୋଗାଙ୍ଗେ କର ଭୋଗ । ତେବେ ସେ କାଟିବୁ ପୁତା ଚଉଷଠି ରୋଗ । ରୋଗ ନ ପଶିଲେ ଯେ କାଳକୁ ଜିଣିପାରୁ । ଫୁଟିବ ଛପ ନାଗର ଷୋଡଶ ଡମ୍ବରୁ ॥ ମେରୁ ଶେଖର

ପୁତାରେ ଶୂନ୍ୟେ ଫୁଟି ବାଟ । ଚନ୍ଦ୍ର ସୂର୍ଯ୍ୟ ଭୁବନେ ପବନ ଯାଇଁ ଭେଟି । ତେଣୁକରି ସୂର୍ଯ୍ୟ ପୁତା ଅଛି ଗୁରୁମୁଖ । ପ୍ରକୃତି ପୁରୁଷ ଯୋଗେ ହୋଇଲା ସପ୍ତାଙ୍ଗ । ସପ୍ତାଙ୍ଗରେ ଥାଇ ଚନ୍ଦ୍ର ସୂର୍ଯ୍ୟ ଗତାଗତ । ଅଷ୍ଟାଙ୍ଗକୁ ଗଲେ ଚନ୍ଦ୍ର ସୂର୍ଯ୍ୟ ହୋଏ ହତ । ଏହୁ ସାତବାର ପୁତା ସପ୍ତାଙ୍ଗ ହୁଅଇ । ଶୁଣ ହେ ମଲ୍ଲିକାନାଥ କହୁବା ବୁଝାଇ ॥ ଏବେ ସାତବାର ପୁତା ଧାରଣାରେ ସାଧ୍ୟ । ବିନା ଧାରଣାରେ ପୁତା ପିଣ୍ଡ ନୋହେ ସିଦ୍ଧି । ବିନା ଯୋଗରେ ପୁତା ନ ରହେ କଦା ପିଣ୍ଡ । ସମୀର ସାଧନ ଦ୍ୱାରା ଯମେ ଦିଅ ଦଣ୍ଡ । ବିନା ପ୍ରାଣାୟାମେ ପୁତା ସିଦ୍ଧି ନୋହେ କାୟା । କାୟା ଅସିଦ୍ଧିରେ ପୁତା ଘୋଟେ କାଳମାୟା ॥ କାଳମାୟା ଛଣେ ପୁତା କର ତୁ ବିଶ୍ରାମ । ସ୍ୱଚ୍ଛନ୍ଦେ ପ୍ରବେଶ କର ଅଭେଦର ଧାମ । କାୟା ନଗ୍ର ଛଣେ ପୁତା ବଜାଅ ନିଶାଣ । ଛଶାଣ ନବେଦ ଶୁଣି ଡରୁ ଜନ୍ତୁଗଣ ॥ ଦିବା ନିଶି ଜାଗ ପୁତା ଅନାହାତ ଧ୍ୱନି । ଯମ ପଳାଇବ ସେ ସ୍ୱନ୍ତକ ସଙ୍ଗେ ଘେନ । ନିର୍ଭୟ ହୋଇବୁ ନଗ୍ରେ କରିଥାଅ ବାସ । ଏବେ ମଲ୍ଲିକାନାଥ କହିଲିଁ ଉପଦେଶ । ଚେତନା ଜଗାଇ ନଗ୍ରେ କର କହୁଥିଲ । ତେବେଟି ନଗ୍ରରେ ପୁତା ନ ପଶିବ କାଳ । ଯୋଗ କମାଇଲେ ପୁତା ଯୋଗୀ ସେ ବୋଲାଇ । କାଳକୁ ଜିଣିଲେ ପିଣ୍ଡେ ବ୍ୟାଧି ନ ପଶଇ । କାଳବ୍ୟାଧି ନ ପଶିବ ଯେବଣଠି ପଥେ । ଶୁଣ ହେ ମଲ୍ଲିକାନାଥ କହିଁ ତୋ ଅଗ୍ରତେ । ଦଶଦ୍ୱାରକୁ ପୁତାରେ ନିରୋଧ ପବନ । ଦଶଧ୍ୱନି ନାଦେ ପୁତା ଜନ୍ତୁ ନିତାଶନ । ରସ ଘ୍ରାଣ ସିଙ୍ଗୁଁ ପୁତା ହୁରୁ ଖଞ୍ଜ କାଳ । ତେବେ ସେ ପିଣ୍ଡକୁ ପୁତା ନ ଛୁଇଁବ କାଳ । ଶୃଙ୍ଖଳ ବାଠ ଯେସନେ ଘୁଣ କାଟି ଖାଇ । ଲୁହାକୁ ଯେସନେ ପୁତା କଳଙ୍କ ଲାଗଇ । ବ୍ୟାଧିରୂପ ହୋଇ କାଳଚକ୍ର ପାଶେ ଘଟେ । ଅଚେତନପିଣ୍ଡ ପୁତା ମରଇ ନିକଟେ । ଚେତନାପିଣ୍ଡ ପୁତାରେ ସର୍ବକାଳେ ଥାଇ । ଅବିନାଶ ପିଣ୍ଡ ପୁତା ବିନାଶ ନୁହଇ । ଯେଉଁ ଯୋଗବଳେ ପୁତା

ପିଣ୍ଡ ରଖି ପାର । ମନ ପବନକୁ ଯେତେ ପାରୁ ଏକକର ॥ ନାଦବିନ୍ଦୁ
ଠାରୁ ଯେବେ ପଡ଼ଯିବ ବନ୍ଧ । ଯୋଗେଶ୍ୱର ହେତୁ ପୁଣ ଅଜ୍ରାମର
ବନ୍ଧ ॥ ରସକୁ ରଖି ପୁଣ ରସାଣି ଦଅ ପାଟ । ଗୋଟି ହୋଇବ
ପୁଣାରେ ଅଲେଖ ଅରୁଟ । ନରଦେହ ପିଣ୍ଡ ସର୍ବଜନ୍ତୁଠାରୁ ସାର ।
କାଳକୁ କି ନ କରି ହୁଅନ୍ତି ନାଶେର ॥ ଜ୍ଞାନବନ୍ଧେ ବାନ୍ଧ ଯେବେ
ପବନ ଉଜାଣି । ବନାବନ୍ଧରେ ପୁଣାରେ ନ ରହଇ ପାଣି ॥ ପ୍ରବନ୍ଧ
ଅସନ ଦେଇ ଶିଳଲ ଛନରେ । ଊର୍ଦ୍ଧ୍ୱମୁଖେ ଲେଉଟ ରହରୁ ତୁ
ବନ୍ଧରେ ॥ ସର୍ବ୍ବ ଭୁଞ୍ଜିଲେ ପୁଣ ପବନ ଲଗିବ । ତେବେ ସେ ରସ
ପୁଣାରେ ଜ୍ୟୋତି ପାଲଟିବ ॥ ସିଦ୍ଧ ସାଧକ ପୁଣାରେ ବେନିଅଙ୍ଗ
କହ । ବିନା ସାଧକ ଅଙ୍ଗରେ ସିଦ୍ଧଅଙ୍ଗ ନୋହ ॥ ଚନ୍ଦ୍ର ସୂର୍ଯ୍ୟ ନାଡ଼ୀ
ପୁଣ ବେନିସିଦ୍ଧ ଅଙ୍ଗ । ତାହାକୁ ସେ ବୋଲି ପୁଣ ଚନ୍ଦ୍ରସୂର୍ଯ୍ୟ
ଯୋଗ ॥ ଚନ୍ଦ୍ରସୂର୍ଯ୍ୟ ମଧ୍ୟେ ପୁଣ ଯେବଣ ପବନ । ତାହାକୁ ସେ ବୋଲି
ପୁଣ ଅମନଭବନ ॥ ବେନିପାଖୁଣ୍ଡାକୁ ସେ ଯେ କରଇ ପ୍ରୟାଣ ।
ଅନୁଭବ ଅସ୍ମାରେ ତୁ ହେତୁକରି ଜାଣ ॥ ବାମପାର୍ଶ୍ୱେ ଚନ୍ଦ୍ର ଦକ୍ଷିଣରେ
ସୂର୍ଯ୍ୟ ରହ । ଚନ୍ଦ୍ରସୂର୍ଯ୍ୟ ମଧ୍ୟେ ପୁଣ ଶମ୍ଭୁନାଳ ଥାଇ ॥ ହଂସବୋଲି
କରି ପୁଣ ସେ ଯେବଣ ଜନ । ଦବଂସେ ଉଦସ୍ୱେ ନାମ ତାହାର
ପବନ ॥ ସୁହଂସ ବୋଲି ପୁଣାରେ ଯେବଣ ମରୁତ । ସ୍ୱବରେ ଉଦସ୍ୱ
ନାମ ତାର ଚନ୍ଦ୍ରମନ୍ତ୍ର । ପରମହଂସ ବୋଲିବା ଯେବଣ ପବନ । ନିଷ୍କଳା
ସଂଯମ ତାକୁ ସନ୍ଧ୍ୟାବୋଲି ଜାଣ । ହଂସ ସୁହଂସ ଦୁହିଙ୍କି ସେହି ଜାତ
କଲେ । ମଧ୍ୟରେ ପରମହଂସ ଗୁପତେ ରହିଲା । ନିତକ୍ଷ ହେବେ
ଓଁକାର ତଳେ ମନ୍ତ୍ରାମନ୍ତ୍ର । ପ୍ରତ୍ୟକ୍ଷ ବେଦରେଟି ବୋଲଇ ଘଟପନ୍ଥା ।
ଏହିଘଟେ ଜନ୍ମଭେଦ ଯୋଗେ କହି ଦେବା । ତେବେ ପାଇବୁ ତୁ
ପୁଣ ନିରଞ୍ଜନ ସେବା । ୧୬୨ । ଦୁସ୍ୱଘଟ ବିସ୍ୱଘଟ ମହାଘଟ
ଭନ । ଅସ୍ମା ମୂଳଜନ୍ମ ଏହି ମୃତ୍ୟୁଂଜୀବନୀ । ୧୬୩ । ଏହି ମନ୍ତ୍ର ଧରି
ହରି କାଳକର୍ମ ଜିଣି । ଘଟଯନ୍ତ୍ରେ ଧରି ପୁଣ ରଖିଲେ ଉଜାଣି ॥

ଝେନ ଘରରେ ହୋଇ ପବନକୁ ବାନ୍ଧ । ପବନ ତୋଟି ଭିତରେ ମନ କଲେ ବନ୍ଧ । ୧୭୫ । ମନପବନ ରୁଦ୍ର ଯେ ଏକ ସ୍ଥିର କଲେ । ନାଦ ବିନ୍ଦୁ ବାନ୍ଧୁ ଗଣ୍ଠି ସହଜେ ଗଢିଲେ ॥ ଦଶନାଡୀରେ ପୁଚ୍ଛା ଦଶଗୋଟି ପବନ । ସର୍ବଘଟେ ଗୁରୁ ଏହି ବୋଲଇ ଜୀବନ ॥ ଦଶପବନ ପୁଚ୍ଛାରେ ନାମ ହୋଏ ଦଶ । ଗୋଟି ଗୋଟି ଠା ଥଗଡର କରିବା ପ୍ରକାଶ ॥ ଇଅଁଳା ପିଅଁଳା ପୃଚ୍ଛା ସୁଷୁମ୍ନା ନାଡ଼ୀ । ଦଶପବନ ପୁଚ୍ଛାରେ କହିଦେବା ଫେଡ଼ି ॥ ପ୍ରାଣ ଅପାନ ଯେ ବ୍ୟାନ ଉଦାନ ସମାନ । ଏ ପଞ୍ଚପବନ ପୃଚ୍ଛା ଅନ୍ତରବିଧାନ ॥ ନାଗକୁମାରକୁ କୃକ ଦେବଦତ୍ତ ଯେନ । ଧନଞ୍ଜୀନ ଅଦ ପୁଚ୍ଛା ଏ ପଞ୍ଚପବନ ॥ ନିଦ୍ରାର ଘର ୪ଟି କାଳକୁ ଜଗିଥିବୁ । ଅଧାର ଭୋଜନ ଏଥେଁ କେବେଁ ନ କରିବୁ ॥ ଗୃହଭୋଜନ ପୃଚ୍ଛାରେ ଦେହେଁ ହୋଏ ବିଷ । ଦିବସେ ନିଦ୍ରା ପୁଚ୍ଛାରେ କାଳ କରେ ଗ୍ରାସ ॥ ହଂସସୁହଂସ ପୁଚ୍ଛାରେ ବେଳଗୋଟିପକ୍ଷୀ । ସର୍ବଦେହେବ୍ୟାପୀପୁଚ୍ଛାପ୍ରାଣ ଅଛିରକ୍ଷୀ ॥ ପରମହଂସ ଏ ବୋଲି ମହାଶୂନ୍ୟ କହି । ହଂସସୁହଂସ ପୃଚ୍ଛାରେ ଜାଣିକରି ଯେହି ॥ ହଂସର ମୁଖ ପୃଚ୍ଛାରେ ପଶ୍ଚିମକୁ ଜାଣ । ଡାହାଣ ବର୍ତ୍ତିକ ହୋଇଛି ଉତ୍ତରପୂର୍ଣ ॥ ଏହି ଯୋଗ ଧରି ମ୍ନାନ ଭୋଜନ କରିବୁ ॥ ତେବେ ଏ ଦେହରୁ ବ୍ୟାଧି ସର୍ବ ଛଡ଼ିବୁ ॥ ସୂର୍ଯ୍ୟଘରେ ପଶି ପୃଚ୍ଛା ଭୋଜନ କୁ କର । ତେବେ ନ ଯିବୁ ପୁଚ୍ଛାରେ ଯମରାଜା ପୁର ॥ ସୁହଂସ ମୁଖ ପୃଚ୍ଛାରେ ସର୍ବଦିଗେ ଜାଣ । ବାମାବର୍ତ୍ତିକ ପୃଚ୍ଛାରେ ହୋଇଛି ଦକ୍ଷିଣ । ଏହି ଯୋଗ ଧରି ଚନ୍ଦ୍ରଘରେ ନିଦ୍ରାକରି । ତେବେ ନ ଯିବୁ ପୃଚ୍ଛାରେ ଯମରାଜାପୁର ॥ ଏହି ଯୋଗକୁ ଧରି ଆହାର ନିଦ୍ରା ଜାଗ । ତେବେ ସିଦ୍ଧି ପୁଚ୍ଛାରେ ହୋଇବ ଯୋଗ ଭୋଗ ॥ ଏ ବାଟେ ପୃଚ୍ଛା ଆହାର ନିଦ୍ରା ସାଧି କର । କାଳ ବ୍ୟାଧିକି ପୃଚ୍ଛାରେ କେବେହେଁ ନ ଡର । ଡାହାଣରେ କାଳ ପଶେ ବାମେ ପଶେ ରୋଗ । ଏ ଦୁଇଅଙ୍ଗ ପୃଚ୍ଛାରେ ଦୃଢ଼କରି ଜାଗ ॥ ଏବେ ଚନ୍ଦ୍ରସୂର୍ଯ୍ୟ ପୃଚ୍ଛା ବିସ୍ତାର କରିବା ।

ପିଣ୍ଡ ବ୍ରହ୍ମାଣ୍ଡରେ ପୂଜା ଘଟାଇ କହୁବା ॥ ସୂର୍ଯ୍ୟମଣି ବୋଲି ପଞ୍ଚପବନକୁ ଧରି । ପଞ୍ଚକଳା ଧରି ସେ ଦିବସ ଜାତକର ॥ ଚନ୍ଦ୍ରମଣି ହୋଇ ପଞ୍ଚପବନ ହୋଇଲା । ପଞ୍ଚକାଳ ଧରି ସେ ସ୍ୱନକୁ ଜାତକଲା ॥ ଏ ଦଶ ପବନ ପୂଜା ହୁଇ ହୁଇ ହୋଇ । ପୃଥ୍ୱୀ ଅପ ତେଜ ବାୟୁ ଆକାଶ ବୋଲାଇ ॥ ସପ୍ତବାର ମଧ୍ୟେ ଥାଇ ସପ୍ତ ଆବରଣ । ସପ୍ତାଙ୍ଗ ଯୋଗରେ କହୁବା ଏବେ ଶୁଣ ॥ ସ୍ଥାନ ସପ୍ତ ଭୂମି ବୋଲି ସପ୍ତାଙ୍ଗରେ କହି । ସପ୍ତାଙ୍ଗ ଭୂମି ଯେ ସାତ ବାରବାଟି ବୋଲାଇ ॥ ଜନ୍ମ ମୃତ୍ୟୁ ସ୍ଥିତି ତିନି ଜାଣ ଏଥେ ପଣି । ଚନ୍ଦ୍ର ସୂର୍ଯ୍ୟ ଅଙ୍ଗେ ପୂଜ ପାରୁ ଯେବେ ମିଶି ॥ ଚନ୍ଦ୍ର ଅଙ୍ଗେ ଚନ୍ଦ୍ର ପୂଜା ଜଗିକର ଦେଖ । ସୂର୍ଯ୍ୟ ଅଙ୍ଗେ ଜାଗ ପୂଜା ରହ ସୂର୍ଯ୍ୟ ପାଖ । ଚନ୍ଦ୍ର ସୂର୍ଯ୍ୟ ଯୋଗେ ପୂଜା ସାତ ବାର ହୋଇ । ପଞ୍ଚଭୂତା ଆତ୍ମା ପୂଜା ଧରିଛନ୍ତି ସେହି । ପଞ୍ଚକଳା ତ୍ରିଗୁଣ ପୁରୁଷ ଯେ ପଞ୍ଚକଳା ସପ୍ତବାର ମିଶି ପୂଜା ହୋଇଛନ୍ତି ମେଳା । ତିନିବାର ଚନ୍ଦ୍ର ପୂଜା ଶୁକ୍ରବାର ସୂର୍ଯ୍ୟ । ସାତବାର ବୁଝାଇ କହୁବା ତୋତେ ବୁଝ ॥ ବାମରେ ଚନ୍ଦ୍ର ପୂଜାରେ ତିନିବାର ଘେନ । ଷାଠିଏଲତା ପରିକ୍ରମା କରେ ମେଦିନୀ ॥ ଦକ୍ଷିଣେ ସୂର୍ଯ୍ୟ ପୂଜାରେ ଶୁକ୍ର ବାର ଧରି । ଷାଠିଏଲତା ପୂଜାରେ ପରିକ୍ରମ କରି ॥ ଷାଠିଏ ଦଣ୍ଡ ପୂଜାରେ ଚନ୍ଦ୍ର ସୂର୍ଯ୍ୟ ଯୋଗ । ପିଣ୍ଡ ବ୍ରହ୍ମାଣ୍ଡକୁ ପୂଜା କରୁଛନ୍ତି ବେଗ ॥ ଏବେ ଯୋଗ ଭୋଗ ପୂଜା କହେ ଶୁଣ ତୋତେ । ଯାହା ତୁ ମଲ୍ଲିକାନାଥ ପଚାରିଲୁ ମତେ । ରବିବାରରେ ପୂଜାରେ ଜୀବଚନ୍ଦ୍ର ଗୋଳା । ସେ ଦିନ ଉଜାଣି ପୂଜା ଇଅଁଳା ପିଅଁଳା ॥ ଶୁକ୍ରପାଖୁ ତା ଉଭିଲେ ଜାଗିଥିବୁ ସତ । ସେ ଦିନ ନ ଯିବୁ ପୂଜା ତ୍ରିଗୁଣଙ୍କର କତ ମୂଳ କମଳକୁ ଗୃହ ଧରିବୁ ଓଲଟି । କାଳଚକ୍ରକୁ ପୂଜାରେ ପକାଇବୁ କାଟି ॥ ସୋମବାରେ ପୂଜାରେ କୁ ସୋମ ସୂର୍ଯ୍ୟ ଦୁଇ । ଅଧାରଚନ୍ଦ୍ରକୁ ପୂଜାକରୁଥିବୁ ଛୁଇ ॥ ତିନିଛିଦ୍ର ଯେ ତହିଁ ଉଜାଣିରଖିବୁ ଚନ୍ଦ୍ରକଳା ଧରି ପୂଜା ସୂର୍ଯ୍ୟକୁ ଜାଗିବୁ । ଷଠ କଳାକୁ ଉଜାଣି ଚନ୍ଦ୍ରକଳା ସଙ୍ଗେ

ସପ୍ତବଙ୍କ ପରେ ରତିକରସ୍ତ୍ରିସଙ୍ଗେ : ସୁଷୁମ୍ନା ଭେଦ କାଉଁଶିମଣ୍ଡଳେ ବାଟ । ଏତେ ଲକ୍ଷଣେ ପୂଜାରେ ଯମ ନୋହେ ଭେଟ । ମଙ୍ଗଳବାର ପୂଜାରେ ମଙ୍ଗ ଧର ଟାଣି । ନିକୁଟ ସ୍ଥାନକୁ ପୂଜା ବଳାଥ ଉଜାଣି । ୨୦୬ । କାଳକୁ ଖଣ୍ଡି ପୂଜାରେ ବ୍ରହ୍ମଅଗ୍ନି ଜାଳ । ସେହୁ ଧନ ନ କରିବୁ ସ୍ତ୍ରିରି ସଙ୍ଗେ କେଳ । ନ ଛୁଇଁବୁ ସ୍ତ୍ରିରି ଅଙ୍ଗ ନ କରିବୁ ରତି । ଏତେ ଲକ୍ଷଣେ ପୂଜା ନ ଛିବୁ ଯମ କତି । ବୁଧବାର ପୂଜାରେ ଭୁ ନାଶି ସଙ୍ଗେ ମେଳା । ତଥି ଧରି ଭେଦିବୁ ସ୍ତ୍ରିଙ୍କ ଚନ୍ଦ୍ରକଳା ॥ ଚନ୍ଦ୍ରକଳା ଧରି ପୂଜା ଧ୍ୟାନମାନ ଭେଦ । କାଳଚକ୍ର ବ୍ୟୂହକୁ ତୁ ପକାଇବୁ ଛେଦ । ଦ୍ୱାଦଶ ଦଳରେ ପୂଜା ମନକୁ ନିରୋଧ । ମହୋଯାଉ ମହାମୀନ ହୋଯାଉ ବନ୍ଧ ॥ ବାରକଳା ଧରି ପୂଜା ଷୋଳକଳା ସାଧ । ଏତେ ଲକ୍ଷଣେ ପୂଜାରେ ଅଜ୍ରାମର ବନ୍ଧ ଗୁରୁବାରେ ପୂଜାରେ ଗୁରୁ ବଚନ ଧର । ନ କରିବୁ ରତି ପୂଜା ନ ଛୁଇଁବୁ ସ୍ତ୍ରିରି ॥ ଗୁରୁକୁ ସୁମରି ପୂଜା ଗୁରୁ ପାଦେ ମତି । ଏତେ ଲକ୍ଷଣେ ଯମ ନ ଛିବ ତୋର କତି । ଶୁକ୍ରବାରରେ ପୂଜାରେ ଯୋଗ ଚନ୍ଦ୍ର ଚଳ । ବାମ ଦକ୍ଷିଣେ ପୂଜାରେ ପବନ ଶାଙ୍କୋଳ ॥ ଦକ୍ଷିଣରେ ପବନ ଦହୁବ ପେଟଭବେଳେ । ଭ୍ରମଣ କରି ପୂଜାରେ ସ୍ତ୍ରିଙ୍କର ମେଳେ । ସୁଷୁମ୍ନା ଭେଦ କାଉଁଶି ମଣ୍ଡଳେ ବାଟ । ଏତେ ଲକ୍ଷଣେ ପୂଜାରେ ଯମ ନୋହେ ଭେଟ । ଶନିବାରେ ପୂଜାରେ ହୋଇବୁ ଏକମନ । ଅବାଇ ମଣ୍ଡଳେ ପୂଜା ବାହୁବୁ ପବନ । ଦ୍ୱାଷ୍ଠ, ବେନି ଦଳ ମଧ୍ୟେ ପୂହାଅ ମିଶି । ଗୋଲ୍ଲହାଟରେ ପୂଜାରେ ଚଢ଼ଯାଇ ହୁରି । ମରିଯାଉ ମହାମୀନ ଲୁଚିଯାଉ ବନ୍ଧ । ଏତେ ଲକ୍ଷଣେ ପୂଜାରେ ଅଜାମର ବନ୍ଧ । ଏ ସାତବାର ବହିଲ୍ଲ ସଦ୍‌ଗୁରୁ ପ୍ରସନ୍ନେ । ଗୁରୁଭକ୍ତ ବିନୁ ଏହା ନ ଜାଣନ୍ତି ଆନେ । କେବଳ ତଥିରେ ପୂଜା ଚନ୍ଦ୍ର ସୂର୍ଯ୍ୟ ଠଣା । ଏ ଭେଦ ଜାଣିଲେ ବୋଲି ହିଙ୍କ ଲକ୍ଷଣା । ସେ ଭଥି କହିବା ପୂଜା ଶୁଣ ମନ ଦେଇ । ତୋହର

ଦେହରେ ପୁତା ସାକ୍ଷୀ ଦେବା କହୁ ॥ ଗଙ୍ଗା ଯମୁନା ପୁତାରେ
ସରସ୍ୱତୀ ଜନ । ଇଅଁଳା ପିଅଁଳା ସୁଷୁମ୍ନା ଦେଖ । ମେରୁ ଫୁଟିଣ
ପୁତାରେ ବାଙ୍କନାଳ ଭେଦ । ଲେଉଟି ଉଜାଣ ପୁତା ବହେଇନଦୀ
ପିଅଁଳା ଯମୁନା ତୀର୍ଥ ଚନ୍ଦ୍ର ଅଙ୍ଗ ହୋଇ । ଇଅଁଳା ଗଙ୍ଗାତୀର୍ଥ ଯେ
ସୂର୍ଯ୍ୟ ଅଙ୍ଗେ ବହୁ ॥ ମଧ୍ୟରେ ସୁଷୁମ୍ନା ପୁତା ତୀର୍ଥ ସରସ୍ୱତୀ । ସେ ତୀର୍ଥ
ସେବିଲେ ନ ଦଣ୍ଡଇ ଜନ୍ତୁପତି ॥ ଉଦୟାଚଳ ଅସ୍ତାଚଳରେ
ଶୂନ୍ୟାଚଳ । ଅନନ୍ତ କୋଟି ତୀର୍ଥର ସ୍ଥାନ ସେହୁ ମୂଳ ॥ ଜନ୍ମ ମୃତ୍ୟୁ
ନୋହିବ ଏ ତୀର୍ଥେ ସ୍ନାନ କରି । ପୁନରପି ନ ଦେଖିବୁ ଯମରାଜାପୁର
ଯୋଗ ଜ୍ଞାନ କହିଲି ବିଶୁଦ୍ଧ ଭେଦ ଯେତେ । ଯୋଗ ଜାଗ ଦେହ
ଦେଖ ରହ ତୁ ନିଷ୍ଠେ । ଜାଗି ପାରିଲେ ପୁତାରେ କାଳ ମୃତ୍ୟୁ ହର
ଅଜାଗ୍ରତ ହେଲେ ପୁତା କାଳ ମୁଖେ ମର । ସାତବାର ଜ୍ଞାନ ଭେଦ
ଉପଦେଶ ସାର । ଗୁପତେ କହିଲୁ ପୁତା ପ୍ରକଟ ନ କର । ଶଚୀନ୍ଦ୍ର-
ନାଥ ଯେ ମୋତେ ଉପଦେଶ କଲେ । ପରମ ଗୁପତ ବୋଲି ଜ୍ଞାନ
ହେତୁ ଦେଲେ । ଗୁପ୍ତମାନଙ୍କରେ ପରମଗୁପତ ଏହୁ । ପାର୍ବତୀନାଥଙ୍କ
ବିନୁ ନ ଜାଣନ୍ତି କେହୁ ॥ ଅନେକ ଯୋଗ ଅବା ଅନେକ ତୀର୍ଥ ଅବା ।
ନାନାଦି ଦେବତାଙ୍କୁ ଯେ କରୁଥାନ୍ତି ସେବା ॥ ଅନେକ ମନ୍ତ୍ର ଜପଣ
ପୂଜା କର୍ମ କରେ । ନାନା କର୍ମ କରି ଭ୍ରମି ସଂସାରୁ ନ ତରେ ॥
ଯୋଗିମାନେ ଯୋଗ ସାଧି କମାଉଣ ଥାନ୍ତି । ଅସ୍ଥା ଯୋଗ ନ ପାଇ
ସେ ବୃଥାରେ ମରନ୍ତି ॥ ଜନ୍ମ ମୃତ୍ୟୁ ଲଭନ୍ତି ସେ ଗତାଗତ ପଥେ ।
ଅଜ୍ଞାନେ କାୟାକୁ କ୍ଳେଶ ଦିଅନ୍ତି ଅମିତେ ॥ ମରିବା ନ ଜାଣେ ପୁତା
ଜୀଇବା ନ ଜାଣେ । ଦାମ୍ଭିକ ପଣେ ପୁତାରେ ମୁଖରେ ବଖାଣେ ॥
ଏହୁ ସାତବାର ଜ୍ଞାନ ନ ଜାଣନ୍ତି ଯେହୁ । କୋଟି ଜନ୍ମାନ୍ତରେ ପୁତା
ଯୋଗୀ ନୋହିନ୍ତି ସେହୁ ॥ ରବି ଶଶି ଗୁରୁ ପୁଣି ମଙ୍ଗଳ ତାହାଙ୍କଣେ ।
ପ୍ରକଟେ ଜାଣିବୁ ପୁତା ଉଦୟ ପ୍ରମାଣେ ॥ ସୋମ ଶୁକ୍ର ବୁଧ ପୁତା
ବାମରେ ଉଦୟ । ତେବେ ସର୍ବ ଦିଗକୁ କରିଯାଉ ଜୟ ॥ ଯେ ଯାହା

ଘଟରେ ଯେବେ ତାହାକୁ ଜଣା ଯାଇ । ସେ ଧନ ଜାଣିବୁ ପୁତା ସର୍ବ ସେଙ୍କି ହୋଇ ॥ ସ୍ୱଘଟରୁ ଖଣ୍ଡ ଯେବେ ପର ଘଟରେ ଥିବ । ସେ ଧନ ଅନୁକୂଳ କେବେହେଁ ନ କରିବ ॥ ବିପରୀତ ବୋଲି ପୁତା ଜାଣ ସେ ଧନର । ଯେଣେ ଗଲେ ଜୟ ନାହିଁ କହିଲି ନିକର ॥ ଏହି ସାତବାର ବିପରୀତ ହୁଏ ଯେବେ । ଅଷ୍ଟଦିନେ ପୁତାରେ ମୃତ୍ୟୁ ହୁଏ ତେବେ ॥ ସପ୍ତାଙ୍ଗରେଥାଇ ପୁତା ଅଷ୍ଟାଙ୍ଗରେଯାଇ । ନିଦ୍ରା ନ ଗଲେ ପୁତାରେ ଜାଗିଥାଅ ବୁଦ୍ଧ ॥ ଅଷ୍ଟାଙ୍ଗ ହେଲେ ପୁତା ଅବଶ୍ୟ ପୂରେ କାଳ । ସପ୍ତାଙ୍ଗେ ଥାଇ ପୁତା ବ୍ରହ୍ମ ଅଗ୍ନି ଜାଳ ॥ ବ୍ରହ୍ମ ଅଗ୍ନି ଭିତରେ ଚନ୍ଦ୍ର ସୂର୍ଯ୍ୟ ଦହ ॥ ବସ୍ତୁ ଭିତରୁ ଅଙ୍ଗ ଆଣିବୁ ପାଳୟାଇ ॥ ଯେବେ ବସ୍ତୁ ଭିତରୁ ତୁ ଉବୁରିବୁ ପୁତା ॥ ଯୋଗୀନ୍ଦ୍ରମାନଙ୍କ ମଧ୍ୟେ ହେବୁ ବ୍ରହ୍ମବେତ୍ତା ॥ ଏହି ଜ୍ଞାନ ପାଇ ଶିବ ବସ୍ତୁଙ୍କର ହେଲେ । ତେଣୁକରି ସଦାଶିବ ପ୍ରଳୟ ନୋହିଲେ ॥ ପରମ ଯୋଗ ତତ୍ତ୍ୱ ଏ ବ୍ରହ୍ମଜ୍ଞାନ ଭେଦ । ଜୀବନ ମୁକ୍ତ ହୁଅଇ ଯୋଗେଶ୍ୱର ପଦ ॥ ନିର୍ବାଣ ପଦ ଲଭିବୁ ଦେଖି ନିରଞ୍ଜନ । ବ୍ରହ୍ମାଣ୍ଡ ଖପର ପରେ ଭିଡ଼ିବୁ ଆସନ ପରମ ସାର ଅମୃତ ପାନ କରୁଥିବୁ । ପଞ୍ଚଦଶ ଭୁବନେ ତୁ ବ୍ରହ୍ମାଙ୍କୁ ଭେଟିବୁ । ଚତୁର୍ଦ୍ଦଶ ଭୁବନରେ ବ୍ରହ୍ମାଣ୍ଡ ଘଟନା । ଧର୍ମ ଯୋଗମାନଙ୍କ ଭଜନ ଏଥି ବିନା ॥ ଜନ୍ମ ମୃତ୍ୟୁ ହେଉଥାନ୍ତି କର୍ମ ଯୋଗ ଯେନ ॥ କର୍ମ ଫଳ ଧରି ଜନ୍ମ ହୋନ୍ତି ନାନା ଯୋନି ॥ ପଞ୍ଚଦଶ ଭୁବନରେ ଜ୍ଞାନୀ ଯୋଗି ଠଣା । ଅନାହତ ଘଟରେ ଶୂନ୍ୟେ ବାଜଇ ବାଜଣା । ଏବେ ମଚ୍ଛିନ୍ଦ୍ରନାଥ କହିଲେ ଉପଦେଶ । ଷଡ଼ ପବନ ହଜାଇ ସେ ସ୍ଥାନରେ ପଶ ॥ ଏ ଉପଦେଶ ପ୍ରକଟ ନ କରିବୁ କାହିଁ । ପର ଶିଷ୍ୟେ ନ ଦେବୁଟି କହିଲି ବୁଝାଇ । ପ୍ରକଟକଲେ ପୁତା ତୁ ଗୁରୁଦ୍ରୋହୀ ହେବୁ । ଅକାଳମରଣ ପୁତା ଅବଶ୍ୟ ପାଇବୁ ॥ ଗୁରୁ ଅସନ୍ତୋଷେ ପୁତା ସର୍ବ ହୋଏ ନାଶ । ଅଦଭୁତ ତାହାକୁ ଲାଗଇ କାଳପାଶ ॥ ମୋହର ଇଷ୍ଟ ପିତାରେ ଏ ପରମ ଜ୍ଞାନ । ଯୋଗେଶ୍ୱରମାନଙ୍କ

ପରମ ଶୂନ୍ୟ ଧନ ॥ ଗୁପତ କର ପୁଛାରେ ହୁଦେ ଥିବୁ ଧର । ଜନ୍ମ ମୃତ୍ୟୁ ଗତାଗତ ପଥ ନ ପାଶୋର । ଗୋରଖନାଥ କହିଲେ ମଛିନ୍ଦ୍ର ଶୁଣିଲେ । ଗୁରୁ ଶିଷ୍ୟ ପରମ ଅଶ୍ରାରେ ବନ୍ଦିରଲେ । ସପତାଙ୍ଗ ଯୋଗ ସର୍ବ ଯୋଗ ମଧ୍ୟେ ସାର । କହେ ବଲରାମ ଦାସ ଚନ୍ଦ୍ର ରମାବର । ୨୬୫ ।

ଇତି ଶ୍ରୀ ବ୍ରହ୍ମବିଦ୍ୟାୟାଂ ପରମହଂସ ସଂହିତାୟାଂ ଯୋଗଶାସ୍ତ୍ରେ
ସପ୍ତାଙ୍ଗଯୋଗସାର ଟୀକା ସମ୍ପୂର୍ଣ୍ଣ ।




କଟକ ସତ୍ୟବାଦୀ ପ୍ରେସରେ ଶ୍ରୀ ରାଧାନାଥ ରଥଙ୍କ ଦ୍ୱାରା ମୁଦ୍ରିତ ୧୯୩୨

ନୂତନ !   ନୂତନ !!   ନୂତନ !!!

# ସଙ୍ଗୀତ ବୈଜୟନ୍ତୀମାଳା

ପ୍ରକାଶିତ ହୋଇଅଛି ।   ସୁଲଭ ମୂଲ୍ୟ ଟ ୦ ୵

ଭକ୍ତକବି ଗୌରଚରଣ ଅଧିକାରୀ କାହାର ନିକଟରେ ଅବଗତ ନୁହନ୍ତି । ସେହି ମହାତ୍ମାଙ୍କ ରଚିତ ଶ୍ରୀକୃଷ୍ଣଲୀଳା ପୁସ୍ତକ ଖଣ୍ଡି ସୁଲଳିତ ମନୋମୁଗ୍ଧକର ରାଗରାଗିଣୀରେ ଲିଖିତ ହୋଇ ଜନସାଧାରଣରେ ଅତି ଆଦରଣୀୟ ଗ୍ରନ୍ଥ ହୋଇଅଛି । ଉପରୋକ୍ତ ସଙ୍ଗୀତର ଗୀତଗୁଡ଼ିକ ସେହି ମହାତ୍ମାଙ୍କ ସ୍ୱରଚିତ । ଭାଷା ସରଳ, ଭାବ ସହଜ, ଗୀତଗୁଡ଼ିକ ସୁମଧୁର ପରିଚିତ ରାଗରେ ରଚିତ । ରାଧା-କୃଷ୍ଣଙ୍କର ଅତୁଳନୀୟ ପ୍ରେମର ମାଧୁର୍ଯ୍ୟପୂର୍ଣ୍ଣ ଗୀତଗୁଡ଼ିକ ଶୁଣିଲେ ବା ପଢ଼ିଲେ କଣ୍ଠସ୍ଥ ନ କରି ରହି ପାରିବେ ନାହିଁ । ଏହା ଏତେଦିନ ଅପ୍ରକାଶିତ ଥିଲା । ଆମ୍ଭେ ବହୁ ଅର୍ଥ ବ୍ୟୟ କରି ଏହା ଜନସାଧାରଣରେ ପ୍ରକାଶ କଲୁଁ । ସହୃଦୟ ସଙ୍ଗୀତ-ପାଠକବୃନ୍ଦ ଏଥିରେ ସନ୍ତୁଷ୍ଟ ଲାଭ କଲେ, ଶ୍ରମ ସାର୍ଥକ ମଣିବୁଁ । ଇତି ।

ନିବେଦକ

ଶ୍ରୀ ଶ୍ରୀ[illegible]ର ଗର୍ଗବଟୁ

ପ୍ରାପ୍ତିସ୍ଥାନ :—

**ଶ୍ରୀରାଧାରମଣ ପୁସ୍ତକାଳୟ**

ପୋଃ ଅଃ ଗୃଦନାଚୌକ, କଟକ ।